

# କୋକିଶିଆଳି ଏବଂ ଚିଢ଼ଇ



"ରାଦୁଗା" ପ୍ରକାଶନ · ମସ୍କୋ



# ରୁଷୀୟ ଲୋକକଥା

ଟଲଷ୍ଟୟଙ୍କ ଦ୍ୱାରା ଲିଖିତ

ଅଙ୍କନ: ୟେଭ୍‌ଗେନି ରାଚେଭ

ଅନୁବାଦ: ରାଜଶ୍ରୀ ଜେନା





ଏକଦା ଗୋଟିଏ ଚଢ଼େଇ ଗଛରେ ବସା କରିଥିଲା । ସେ କିଛି ଅଣ୍ଡା ଦେଲା ଏବଂ ଅଣ୍ଡାଗୁଡ଼ିକରୁ ଛୁଆମାନଙ୍କୁ ବାହାର କଲା । ଯେତେବେଳେ କୋକିଶିଆଳି ଏକଥା ଶୁଣିଲା ସେ ଗଛ ନିକଟକୁ ଆସିଲା ଏବଂ ସେଠାରେ ବସି ତା'ର ଲାଙ୍ଗୁଡ଼କୁ ଗଛର ଗଣ୍ଡିରେ ପିଟିବାକୁ ଲାଗିଲା ।

ଘଟଣା କ'ଣ ଜାଣିବାକୁ ଚଢ଼େଇଟି ଗଛରୁ ଦେଖିଲା ।

"ମୁଁ ମୋର ଲାଙ୍ଗୁଡ଼ ସାହାଯ୍ୟରେ ଗଛଟିକୁ କାଟି ଦେବି", କୋକିଶିଆଳି କହିଲା । "ତା'ପରେ ମୁଁ ତୁମକୁ ଏବଂ ତୁମର ଛୁଆମାନଙ୍କୁ ଖାଇ ଯିବି !"

ଚଢ଼େଇଟି କୋକିଶିଆଳି କଥାରେ ଭୟ ପାଇଲା ଏବଂ ତାକୁ ବିନୀତ ଭାବେ ଅନୁରୋଧ କରିବାକୁ ଲାଗିଲା : "ମା' କୋକିଶିଆଳି, ଦୟାକରି ମୋର ଗଛକୁ କାଟ ନାହିଁ, ମୋର ପିଲାମାନଙ୍କ ପ୍ରତି ଦୟା କର, ମୁଁ ତୁମକୁ ମହୁ ଏବଂ ପିଠା ଖୁଆଇବି ।"

"ଯଦି ତୁମେ ମୋତେ ପିଠା ଏବଂ ମହୁ ଖାଇବାକୁ ଦେବ, ତେବେ ମୁଁ ଗଛକୁ କାଟିବି ନାହିଁ !"

"ତେବେ ମୋ ସହ ବଡ଼ ରାସ୍ତା ଉପରକୁ ଚାଲିଆସ", ଚଢ଼େଇ କହିଲା ।

କୋକିଶିଆଳି ଏବଂ ଚଢ଼େଇ ବଡ଼ ରାସ୍ତା ଅଭିମୁଖେ ଯିବା ଆରମ୍ଭ କରି ଦେଲେ : ଚଢ଼େଇ ଉଡ଼ୁଥାଏ ଏବଂ କୋକିଶିଆଳି ତା ପଛରେ ଦୌଡ଼ୁଥାଏ ।

ଚଢ଼େଇ ଜଣେ ବୁଢ଼ୀକୁ ତା'ର ନାତୁଣୀ ସହ ରାସ୍ତା ଉପରେ ଆସୁଥିବାର ଦେଖିଲା । ସେମାନେ ଗୋଟିଏ ଝୁଡ଼ି ଭର୍ତ୍ତି ପିଠା ଏବଂ କାଚ ପାତ୍ରରେ ମହୁ ବୋହି ନେଉଥିଲେ ।

କୋକିଶିଆଳି ବୁଦା ମଧ୍ୟରେ ଲୁଚିଗଲା ଏବଂ ଚଢ଼େଇଟି ଛଳନା କରି ରାସ୍ତା ଉପରେ ଦୌଡ଼ିବାକୁ ଲାଗିଲା, ସତେ ଯେପରି ସେ ଉଡ଼ିପାରୁ ନାହିଁ : ସେ କିଛି ଦୂର ଉଡ଼ି ରାସ୍ତା ଉପରେ ପଡ଼ିଯାଉଥାଏ, ପୁଣି ଥରେ ଉଡ଼ି ଆଉ ଥରେ ରାସ୍ତା ଉପରେ ପଡ଼ିଯାଉଥାଏ ।

ଝିଅଟି କହିଲା : "ଚାଲ ଚଢ଼େଇଟିକୁ ଧରିବା !"

"କେମିତି ଆମେ ତାକୁ ଧରିବା ?"

"ମୁଁ ନିଶ୍ଚିତ ଯେ, ଆମେ ତାକୁ ଧରି ପାରିବା । ତାହାର ଡେଣା ଭାଙ୍ଗି ଯାଇଛି ଏବଂ ଚଢ଼େଇଟି କି ସୁନ୍ଦରିଆ ହୋଇଛି !"

ବୁଢ଼ୀ ଏବଂ ଝିଅଟି ଝୁଡ଼ି ଏବଂ କାଚ ପାତ୍ର ରାସ୍ତା ଉପରେ ରଖି ଦେଲେ ଏବଂ ଚଢ଼େଇଟି ପଛରେ ଦୌଡ଼ିବାକୁ ଲାଗିଲେ ।

ଚଢ଼େଇଟି ସେମାନଙ୍କୁ ପିଠା ଏବଂ ମହୁଠାରୁ ବହୁତ ଦୂରକୁ ନେଇଗଲା । କୋକିଶିଆଳି ଟିକିଏ ସମୟ ନଷ୍ଟ ନକରି ଯେତେ ପାରେ ସେତେ ପିଠା ଏବଂ ମହୁ ଖାଇଲା ଏବଂ ବଳକା ସବୁକୁ ଲୁଗ୍ରଇ ଦେଲା । ଚଢ଼େଇଟି ନିଜର ଗଛ ନିକଟକୁ ଉଡ଼ିଗଲା । ସେ ସେଠାରେ ପହଞ୍ଚିବା ମାତ୍ରେ ହିଁ କୋକିଶିଆଳି ପୁଣି ଗଛରେ ତା'ର ଲାଙ୍ଗୁଡ଼ ପିଟିବାକୁ ଲାଗିଲା ।

"ମୁଁ ମୋର ଲାଙ୍ଗୁଡ଼ ଦ୍ୱାରା ତୁମର ଗଛକୁ କାଟି ଦେବି ଏବଂ ତା'ପରେ ତୁମକୁ ଏବଂ ତୁମର ଛୁଆମାନଙ୍କୁ ଖାଇ ଯିବି !"

ଚଢ଼େଇଟି ବସାରୁ ଉଙ୍କିମାରିଲା ଏବଂ କୋକିଶିଆଳିକୁ ବିନୀତ ଅନୁରୋଧ କରିବାକୁ ଲାଗିଲା :

"ମା' କୋକିଶିଆଳି ଦୟାକରି ଗଛଟିକୁ କାଟ ନା, ମୋ ପିଲାମାନଙ୍କ ପ୍ରତି ଦୟା କର, ମୁଁ ତେବେ ମଦ୍ୟ ପିଇବାକୁ ଦେବି ।"

"ଦେଖ, ଜଲଦି କର, ଏତେ ଗୁଡ଼ାଏ ତେଲିଆ ପିଠା ଏବଂ ମିଠା ମହୁ ଖାଇଲା ପରେ ମୋର ବହୁତ ପିଇବାକୁ ଇଚ୍ଛା ହେଉଛି !"

ପୁଣି ଥରେ ଚଢ଼େଇ ଉଡ଼ିଲା ଏବଂ କୋକିଶିଆଳି ତା'ର ପଛେ ପଛେ ରାସ୍ତାରେ ଦୌଡ଼ିବାକୁ ଲାଗିଲା ।

ଛଢ଼େଇଟି ଗୋଟିଏ ଗ୍ରଷୀ ଲୋକକୁ ନିଜ ଘୋଡ଼ାଗାଡ଼ିରେ ପିମ୍ପା ଭର୍ତ୍ତି ମଦ୍ୟ ନେଇଯାଉଥିବାର ଦେଖିଲା । ସେ ଗ୍ରଷୀର ଗ୍ରରିପଟେ ଉଡ଼ିବାକୁ ଲାଗିଲା । ତା'ପରେ ଘୋଡ଼ା ଉପରେ ବସିଲା, ପୁଣି ପିମ୍ପା ଉପରେ ବସିଲା ଆଉ ଥରେ ଘୋଡ଼ା ଉପରକୁ ଫେରି ଆସିଲା । ଏହିପରି ସେ ଗ୍ରଷୀ ଲୋକଟିକୁ ଏପରି ରଗାଇ ଦେଲା ଯେ, ସେ ଚଢ଼େଇକୁ ମାରିବାକୁ ଇଚ୍ଛା କଲା । ଶେଷରେ ଚଢ଼େଇଟି ଉଡ଼ିଆସି ପିମ୍ପା ମୁହଁର ଠିପି ଉପରେ ବସିଲା । ଗ୍ରଷୀଟି ଗୋଟିଏ କୁରାଢ଼ିରେ ତାକୁ ପାହାରେ ଦେଲା । କିନ୍ତୁ ଠିକ୍ ଠିପି ଉପରେ ହିଁ ଆଘାତ କଲା ଏବଂ ଠିପିଟି ତଳେ ପଡ଼ିଗଲା । ଚଢ଼େଇଟି ଉଡ଼ିଗଲା ଏବଂ ଗ୍ରଷୀଟି ତା' ପଛରେ ଦୌଡ଼ିବାକୁ ଲାଗିଲା ।

ମଦ ପିମ୍ପାରୁ ରାସ୍ତା ଉପରକୁ ବହି ଆସିଲା ଏବଂ କୋକିଶିଆଳି ମନଇଚ୍ଛା ମଦ ପିଇସାରି,

ଗୀତ ଗାଇ ଗାଇ ନିଜ ବାଟରେ ଯିବାକୁ ଲଗିଲ ।

ଯେତେବେଳେ ଚଢ଼େଇଟି ତା'ର ବସା ନିକଟକୁ ଫେରି ଆସିଲ, ସେଠାରେ କୋକିଶିଆଳି ତା'ର ଲଙ୍ଗୁଡ଼କୁ ଗଛ ଦେହରେ ପିଟୁଥିବାର ଦେଖିଲ : "ଚଢ଼େଇ ମା' ତୁମେ ମୋତେ ଖାଇବାକୁ ଦେଇଛ ?"

"ହଁ, ଦେଇଛି !"

"ତୁମେ ମୋତେ ମଦ ପିଇବାକୁ ଦେଇଛ ?"

"ହଁ, ଦେଇଛି !"

"ଏବେ ମୋତେ ହସାଅ, ନହେଲେ ମୁଁ ତୁମର ଗଛକୁ କାଟି ଦେବି, ତୁମକୁ ଏବଂ ତୁମର ଛୁଆମାନଙ୍କୁ ଖାଇ ଯିବି !"

ଚଢ଼େଇଟି କୋକିଶିଆଳିକୁ ଗାଁକୁ ନେଇଗଲ ଏବଂ ସେଠାରେ ସେମାନେ ଗୋଟିଏ ବୁଢ଼ୀ ଲେକକୁ ଗାଈ ଦୁହୁଁଥିବାର ଏବଂ ବୁଢ଼ା ଲେକଟିକୁ ଛଣରୁ ଜୋତା ତିଆରି କରୁଥିବାର ଦେଖିଲେ ।

ଚଢ଼େଇଟି ବୁଢ଼ୀର କାନ୍ଧ ଉପରେ ବସିଲ ।

"ହଲଚଲ ହୁଅ ନା", ବୁଢ଼ା ଲେକଟି କହିଲ । "ତୁମର କାନ୍ଧରେ ଗୋଟିଏ ଚଢ଼େଇ ବସିଛି, ମୁଁ ତାହାକୁ ମାରିବି !" ଏବଂ ସେ ବୁଢ଼ୀ ଲେକଟିର କାନ୍ଧରେ ଆଘାତ କଲ, କିନ୍ତୁ ଚଢ଼େଇଟି ଉଡ଼ିଗଲ ।

ବୁଢ଼ୀଟି ତଳେ ପଡ଼ିଗଲ ଏବଂ ତା'ର ଦୁଧ ପାତ୍ରଟି ଭାଙ୍ଗିଗଲ । ସେ ଉଠି ପଡ଼ିଲ ଏବଂ ବୁଢ଼ାକୁ ଗାଳି ଦେବାକୁ ଲଗିଲ ।

କୋକିଶିଆଳି ବୁଢ଼ାର ବୋକାମି ଉପରେ ଖୁବ୍ ହସିବାକୁ ଲଗିଲ ।

ଚଢ଼େଇଟି ତାହାର ବସା ନିକଟକୁ ଉଡ଼ିଗଲ । କିନ୍ତୁ ସେ ତାହାର ଛୁଆମାନଙ୍କୁ ଖାଇବାକୁ ଦେଉ ନଦେଉଣୁ କୋକିଶିଆଳି ସେଠାରେ ପହଞ୍ଚି ଯାଇଥିଲ ଏବଂ ତା'ର ଲଙ୍ଗୁଡ଼କୁ ଗଛରେ ପିଟିବାକୁ ଲଗିଲ !

"ଚଢ଼େଇ ମା' ତୁମେ ମୋତେ ଖାଇବାକୁ ଦେଇଛ ?"

"ହଁ, ଦେଇଛି !"



"ତୁମେ ମୋତେ ମଦ ପିଇବାକୁ ଦେଇଛ ?"

"ହଁ, ଦେଇଛି !"

"ମୋତେ ହସାଇଛ କି ?"

"ହଁ, ହସାଇଛି !"

"ଏବେ ମୋତେ ଭୟ ଦେଖାଅ !"

ଏତେବେଳକୁ ଚଢ଼େଇ ଖୁବ୍ ରାଗି ଯାଇଥିଲା :

"ଠିକ୍ ଅଛି, ନିଜର ଆଖି ବନ୍ଦ କର ଏବଂ ମୋର ପଛେ ପଛେ ଦୌଡ଼ !"

ସାରା ରାସ୍ତା ଚଢ଼େଇଟି ଉଚ୍ଚ ସ୍ୱରରେ ଡାକି ଡାକି ଉଡ଼ିବାକୁ ଲାଗିଲା ଏବଂ କୋକିଶିଆଳିଟି ଖୁବ୍ ଜୋର୍‌ରେ ଆଖି ବନ୍ଦ କରି ତା ପଛେ ପଛେ ଦୌଡ଼ିବାକୁ ଲାଗିଲା ।

ଚଢ଼େଇଟି କୋକିଶିଆଳିକୁ ଶିକାରୀ ଦଳ ଏବଂ ଶିକାରୀ କୁକୁରଙ୍କ ପାଖକୁ ନେଇଗଲା ।

"ମା' କୋକିଶିଆଳି, ତୁମେ ବର୍ତ୍ତମାନ ଭୟଭୀତ ହୋଇପାର !"

କୋକିଶିଆଳି ଆଖି ଖୋଲିବା ମାତ୍ରେ କୁକୁରମାନଙ୍କୁ ଦେଖିଲା । ସେ ଖୁବ୍ ଜୋର୍‌ରେ ଦୌଡ଼ିବାକୁ ଲାଗିଲା ଏବଂ କୁକୁରମାନେ ତା'ର ପଛେ ପଛେ ଦୌଡ଼ିଲେ । ଖୁବ୍ କଷ୍ଟରେ ସେ ତା'ର ଗାତ ନିକଟରେ ପହଞ୍ଚିଲା ।

କୋକିଶିଆଳି ଗାତ ମଧ୍ୟରେ ପଶି ଗଲା ଏବଂ ସେଠାରେ ବସି ନିଶ୍ୱାସ ନେବାକୁ ଲାଗିଲା ଏବଂ ନିଜକୁ ନିଜେ କହିବାକୁ ଲାଗିଲା : "ଆଖିମାନେ, ତୁମେମାନେ କ'ଣ କରୁଥିଲ ?"

"ଆମେ ନିଶ୍ଚିତ ହେବା ପାଇଁ ଦେଖୁଥିଲୁ ଯେପରି କୁକୁରମାନେ ତୁମକୁ ଖାଇ ନ ଯାଆନ୍ତି ।"

"କାନମାନେ, ତୁମେମାନେ କ'ଣ କରୁଥିଲ ?"



"ଆମେ ଶୁଣୁଥିଲୁ ଯେପରି କୁକୁରମାନେ ତୁମକୁ ଗିଳି ନ ଦିଅନ୍ତି ।"

"ଗୋଡ଼ମାନେ, ତୁମେମାନେ କ'ଣ କରୁଥିଲ ?"

"ଆମେ ଦୌଡ଼ୁଥିଲୁ ଯେପରି କୁକୁରମାନେ ତୁମକୁ ନ ଧରି ପାରନ୍ତି ।"

"ଲଞ୍ଜ ତୁମେ କ'ଣ କରୁଥିଲ ?"

"ମୁଁ ବୁଦା, ଖୁଣ୍ଟା ଗଛ ଏବଂ ଡାଳ ସବୁରେ ଗୁଡ଼ାଇ ହୋଇ ଯାଉଥିଲି, ଯା' ଫଳରେ ତୁମେ ଖୁବ୍ ଶୀଘ୍ର ଦୌଡ଼ି ପାରିଲ ନାହିଁ ।"

କୋକିଶିଆଳି ଲଞ୍ଜ ଉପରେ ଖୁବ୍ ରାଗିଗଲା ଏବଂ ତାକୁ ଗାତରୁ ବାହାର କରି ରଖିଲା ।

"କୁକୁରମାନେ ତୁମେମାନେ ମୋର ଲଞ୍ଜକୁ ଖାଅ !"

କୁକୁରମାନେ ତାହାର ଲଞ୍ଜକୁ ଧରି ପକାଇଲେ ଏବଂ ତାକୁ ଗାତରୁ ଟାଣି ବାହାର କରି ଦେଲେ ।





**ЛИСА И ДРОЗД**

**Русская народная сказка**

***На языке ория***

**THE FOX AND THE THRUSH**

**A Russian Folk Tale**

***In Oriya***


ମୁଖ୍ୟ ପରିବେଶକ –
ନବଯୁଗ ଗ୍ରନ୍ଥାଳୟ, ବକ୍ସିବଜାର ରୋଡ୍,
କଟକ – ୭୫୩୦୦୧





ସୋଭିଏତ୍ ୟୁନିଅନ୍‌ରେ ମୁଦ୍ରିତ

